# କାହାକୁ ନମଣ ସାନ



ଲେଖକ : ଶ୍ରୀ ବ୍ରଜବିହାରୀ ଦାଶ

ପ୍ରକାଶକ : ଇସ୍ପାତ ସାହିତ୍ୟ ସଂସଦ
( ରାଉର୍କେଲା )

ସତ୍ୱାଧିକାରୀ : ଶ୍ରୀମତୀ ମନୋରମା ଦାଶ
ଏଚ୍-୧୬୫, ସେକ୍ଟର-୬
ରାଉର୍କେଲା-୨

ମୁଦ୍ରଣ : ଶ୍ରୀ କୃଷ୍ଣା ପ୍ରିଣ୍ଟର୍ସ, କୋଣାର୍କ, ପୁରୀ

ପ୍ରକାଶ କାଳ : ୧୯୯୭ ଦୋଳପୂର୍ଣ୍ଣିମା

ମୂଲ୍ୟ-ଟ ୧୦.୦୦

# ॥ ଉତ୍ସର୍ଗ ॥

ଲେଖି ସ୍ୱାତୃକ୍ତି ଧର୍ମ ମଣିଷଟିଏ ମୁଁ । ତଥାପି କେତେବେଳେ, ସାହିତ୍ୟ
ସମ୍ମିଳନୀରେ ଯୋଗ ଦିଏ । ଫେରିବାର ବିଳମ୍ବ ହେଲେ
ଯଦି କେହି ଅସନ୍ତୁଷ୍ଟ ହୁଏ, ସେ ଦରୋଟି ଖିଆରେ ଲୁହେ
ନବ ତୁଣ୍ଡ ମେଣ୍ଟା ମୁଣ୍ଡ । ତାକୁ କହୁ କହନା । ସେ
ଥିଲା ମୋ ଶିଶୁ ସାହିତ୍ୟ ସୃଷ୍ଟିର ପ୍ରଥମ ଶ୍ରୋତା ।
ମୋର ପୁତ୍ର ୰ ଦେବାଶୀଷ (ଅଭିର୍ଭାବ
୩।୧।୮୮ ତିରୋଧାନ ୨୪।୪।୯୩ । ତାର
ସ୍ମୃତି ଉଦ୍ଦେଶ୍ୟରେ ମୋ ରାଜ୍ୟର
ଅଗଣିତ ଶିଶୁ ପାଠକଙ୍କ ହାତରେ

**'କାହାକୁ ନମଣ ସାନ'**

ପୁସ୍ତକଟିକୁ ଉତ୍ସର୍ଗ କରୁଛି ।

**"ବ୍ରଜ ବିହାରୀ"**

## ପ୍ରସଙ୍ଗରେ.................

ଶିଶୁ କବିତାର ସଂଖ୍ୟା ବର୍ତ୍ତମାନ ସମୟରେ ଅଧିକ ନହେଁ, ଏହା ନିଃସନ୍ଦେହରେ କୁହାଯାଇ ପାରେ । କିନ୍ତୁ ଶିଶୁ ସାହିତ୍ୟ ପ୍ରତି ପାଠକ ମାନଙ୍କର ଅନୁରକ୍ତି ନ୍ୟୂନ, ଏ ମତ ସମସ୍ତେ ପୋଷଣ କରନ୍ତି । ବ୍ୟକ୍ତିଗତ ଅନୁଭବରୁ ଦେଖାଯାଇଛି । ଏହି କାରଣରୁ ବହୁ ସଫଳ ସ୍ରଷ୍ଟା ଏ ଦିଗରୁ ଦୃଷ୍ଟି ଫେରାଇ ନେଇଛନ୍ତି । କିନ୍ତୁ କବି ତଥା ଗାଳ୍ପିକ **ଶ୍ରୀଯୁକ୍ତ ବ୍ରଜ ବିହାରୀ ଦାଶ** ଏ ମତର ବ୍ୟତିକ୍ରମ ଏବଂ ଶିଶୁ ଉପଯୁକ୍ତ ଲେଖାକୁ ଉଚିତ୍ ମୂଲ୍ୟ ନିଶ୍ଚୟ ମିଳିବ । ଏଣୁ ସେ ଶିଶୁ ଗଳ୍ପ ଓ କବିତା ଲେଖାରେ ମନ ପ୍ରାଣ ଢାଳି ଦେଇଛନ୍ତି । ପୁସ୍ତକ ସନ୍ନିବେଶିତ ସମସ୍ତ କବିତା ପାଠକରି ଦେଖିଛି । ପ୍ରତ୍ୟେକଟି କବିତା ମୌଳିକ ଗୁଣରେ ଭୂଷିମନ୍ତ । ଏଗୁଡ଼ିକ ଶିଶୁ ଓ କିଶୋର ପ୍ରାଣକୁ ନିଶ୍ଚୟ ଛୁଇଁବ, ଧ୍ରୁତତାର ସହିତ କୁହାଯାଇପାରେ । ଏହା ପୂର୍ବରୁ ତାଙ୍କର **ମିଠାଗପ** ନାମରେ ଏକ ଶିଶୁ ଗଳ୍ପ ସଂକଳନ ସ୍ୱପ୍ରଚେଷ୍ଟାରେ ପ୍ରକାଶିତ । ଏତଦ୍ ବ୍ୟତୀତ ରାଉର୍‌କେଲା ତଥା ଓଡ଼ିଶାର ବହୁ ସ୍ୱନାମଧନ୍ୟ ପତ୍ରପତ୍ରିକାରେ ତାଙ୍କର ଗଳ୍ପ ଓ କବିତା ପ୍ରକାଶିତ ହୋଇ ଆସୁଛି । ବହୁ ସଂସ୍ଥା ପକ୍ଷରୁ ସେ ପୁରସ୍କୃତ ଓ ସମ୍ମାନିତ ।

ଶିଶୁ କବି ଓ ଗାଳ୍ପିକ ଦିଗକୁ ବାଦ ଦେଲେ ସେ ଜଣେ ସଫଳ ବ୍ୟଙ୍ଗ ସାହିତ୍ୟିକ । ତାଙ୍କର ବ୍ୟଙ୍ଗାତ୍ମକ ରଚନା (କବିତା ଓ ଗଳ୍ପ) ଶୁଣି ଯେ କୌଣସି ପାଠକ ଓ ଶ୍ରୋତା ନହସି ରହିପାରିବେନି । ସମ୍ପ୍ରତି ସେ ରାଉର୍‌କେଲାର ଏକ ଅଗ୍ରଣୀ ସାହିତ୍ୟ ସଂସ୍ଥା "ଇସ୍ପାତ ସାହିତ୍ୟ ସଂସଦ"ର ଜଣେ ପୁରୋଧା ସଦସ୍ୟ ଓ ଆଜୀବନ ସଭ୍ୟ ।

ତାଙ୍କର ସାହିତ୍ୟ ସାଧନାରେ ଈଶ୍ୱରେଚ୍ଛାର ଶୁଭାଶିଷ ମିଳୁ, ସେ ଯଶସ୍ୱୀ ହୁଅନ୍ତୁ ଏତିକି କାମନା ।

ସର୍ବଶେଷରେ ଅନେକ—ଅନେକ – ଅନେକ ଅଭିନନ୍ଦନ ତାଙ୍କୁ ।

**ବସନ୍ତ ପ୍ରିୟା ମହାପାତ୍ର**

ଉପଦେଷ୍ଟା—ଇସ୍ପାତ ସାହିତ୍ୟ ସଂସଦ, ରାଉର୍‌କେଲା

# ସୂଚୀପତ୍ର

# କାରଖାନା ଓ ଜଙ୍ଗଲ



[ ୧ ]

କାରଖାନା ଟିଏ ହୋଇବ ବୋଲି
ଜଙ୍ଗଲ ହେଲା କଟା ।
ଆସିଲା ଗାଡ଼ି ବୋଝେଇ ହୋଇ
ସିମେଣ୍ଟ ଛଡ ଛଟା ।।
ଘନ ଜଙ୍ଗଲ କ୍ଷୀଣ ହୋଇଲା
ନତ ହେଲା ତା ଶିରୀ ।
ଇସ୍ପାତ ଶିଳ୍ପ ହୋଇଲା ଗଢା
ବଜାଇ ତାର ଭେରୀ ।।
ଚିମିନି ଧୁଆଁ ଉଠିଲା ନଭେ
ଆକାଶେ ଉଡେ ଧୂଳି ।
ଜନ ବସତି ପାଇଁ ହୋଇଲା
କୋଠା ଭଳିକି ଭଳି ।।

[ ୨ ]

ଜଙ୍ଗଲକୁ ଚାହିଁ କହଇ କାରଖାନା ଗରବେ
ତୋତେ କାଟି ମୋତେ ଗଢନ୍ତି ଦେଖ ମାନବ ସର୍ବେ
ମୋର ଯୋଗୁଁ ଦେଶ ସମୃଦ୍ଧ କେତେ ଦ୍ରବ୍ୟ ତିଆରି
ରପ୍ତାନୀ ହୁଅଇ ବିଦେଶେ ବାଜେ ବାଣିଜ୍ୟ ଭେରୀ

ଦିନ୍ ଦିନ ଦେଖ ବଢୁଛି          ଏଠି ମୋ କଳେବର
ସେହି ପରିମାଣେ କମୁଛି          ବାଛି ଜନ କୁଠାର

ଦେଖ ତୋର ଏହି ଅବସ୍ଥା      ମୋତେ ଲଗଇ ଦୁଃଖ
ସଭ୍ୟତାର ମୁହିଁ ବାହାନ          ଦିଏ ମାନବେ ସୁଖ

[ ୩ ]

ଶୁଣି ଏକଥା          ଟେକିଣ ମଥା
ପଚର ଦେଲ ଝାଡ଼ି ।
ମାନବ ବନ୍ଧୁ          ବୋଲି ମୋ ଆଗେ
ନଛାଡ଼ ଆଉ ରଡ଼ି ॥

ଛାଡ଼ି ଦେଉଛୁ          ଅଙ୍ଗାରକାମ୍ଳ
ଦିନକୁ ଦିନ ବେଶୀ ।
ଶରୀର ମୋର          ହେବାରୁ କ୍ଷୀଣ
ନପାରେ ତାକୁ ଶୋଷି ॥

ଦିନକୁ ଦିନ          ମାନବ ସଂଖ୍ୟା
ଯାଆନ୍ତି ଶିଘ୍ର ବଢି ।
ଅମଳଜାନ          ଲୋଡନ୍ତି ଯେତେ
ନପାରେ ତାହା ଛାଡ଼ି ॥

ଭୋଗନ୍ତି ତେଣୁ ଶ୍ରମିକ ତୋର
ନାନା ପ୍ରକାର ରୋଗ ।
କମିଲେ ମୁହିଁ ବଢ଼ିଲେ ତୁହି
ଲଭିବେ ମୃତ୍ୟୁ ଯୋଗ ॥

ତୋପାଇଁ ଯଦି ବାଣିଜ୍ୟ ଚଳେ
ନୁହେଁ ମୁଁ ତୋଠୁ ଊଣା ।
ଦିଏ ମୁଁ କେତେ ଜଙ୍ଗଲି ଚିଜ
ଗୋଗୁଳ ମହୁ ଝୁଣା ॥

ମୁହିଁ କମିଲେ ତୁହି ବଢ଼ିଲେ
ନୋହିବ ଦେଶ ହିତ ।
ଉଭୟେ ଯଦି ବଢ଼ିବା ଆମେ
ହାତେ ମିଳାଇ ହାତ ॥

ଦେଶ ପ୍ରଗତି ହୋଇବ ନିଶ୍ଚେ
ରହିବ ଏହି କ୍ଷିତି ।
ନୋହିଲେ ଜାଣ ନିଶ୍ଚିହ୍ନ ହେବେ
ଏହି ମଣିଷ ଜାତି ॥

***

# ପିତା ଓ ମିଠା

ପିତା ଓ ମିଠା ଥିଲେ ଦୁଇ ଭଉଣୀ
ପରସ୍ପର ଗୁଣ ହେଲେ ବଖାଣି
ମିଠା କୁହେ ଶୁଣ୍ ପିତା
କେତେ ତିକ୍ତ ସ୍ୱାଦ      ଅଟଇ ତୋହର
ପାଟି ହୋଇଯାଏ ପିତା ।। ୧ ।।

ତୋର ଅଟେ ଯେଉଁ ତିନି ସନ୍ତାନ
ଧରି ରଖିଛନ୍ତି ତୋହରି ଗୁଣ
ବଡ ଝିଅ  ଚିରେଇତା
ନିମ୍ବ ଓ କଇର      ନାଆଁ ତାଙ୍କ ଶୁଣି
ଲଜ୍ଜେ ନଇଁଯାଏ ମଥା ।। ୨ ।।

ମୋହର ପିଲା କେତେ କେଜାଣି
ଯେତେ ଚେଷ୍ଟା କଲେ ନପାରେ ଗଣି
ରସଗୋଲା ଛେନାପୋଡ
ସନ୍ଦେଶ ଜିଲାପି      ଛେନାଗଜା ଲଡୁ
ଚିନି ମିଶିରୀ ଓ ଗୁଡ଼ ।। ୩ ।।

ଆଉ ଯେତେ ଦ୍ରବ୍ୟ ଅଛି ଜଗତେ
ସବିବନ୍ତ ନାହିଁ କନିଲେ ପ୍ରେମନ
ଖାଦ୍ୟ ଭିତରେ ମୁଁ ରାଜା
ଭୋଜି ମହୋତ୍ସବେ          ସବୁଠି ଆଦର
ଖାଇଲେ ଜାଣନ୍ତୁ ମଜା ॥ ୪ ॥

ପିତା ଡାକ ଦେଲା ମିଠା ଭଉଣୀ
ଲଜରେ ସଢ଼ିବୁ ମୋ କଥା ଶୁଣି
ନକାଢ଼ ମୋ ଆଗେ ଢ଼ମ
ମୋତେ ଛାଡ଼ି ତୋତେ          ଖାଇବ ଯେ ଜନ
ଭେଟିବ ଅଚିରେ ଯମ ॥ ୫ ॥

ଦେହେ ହେବ ତାର କାଛୁ କୁଣ୍ଡିଆ
ବୃଦ୍ଧ ପାଲଟିବ ଗଜା ଭେଣ୍ଡିଆ
ହେବମଧୁ ମୁତ୍ର ରୋଗ
ଜୀବ ଥାଉ ଥାଉ          ତୋତେ ଆଶ୍ରାକଲେ
ଭେଟିବ ମରଣ ଯୋଗ ॥ ୬ ॥

ଚିରେଇତା ମୋର ବଡ଼ ଦୁହିତା
ପିଇ ପାଣି ହେବ ଜଗତ ହିତା
କଲରା ଭଜାକୁ ଘାତ
ନିମ୍ବ କଢ଼ି ଭଜା          ଆହା କେଡେ ମଜା
ଗ୍ରୀଷ୍ମ ଖାଇ ଯାଏ କ୍ଷେତ ॥ ୭ ॥

ଧୂଆଁ ଦେଲେ ଘରେ ନିମ୍ବ ପତଙ୍ଗ
ରେଗ ନ ଆସଇ ଡରେ ତାହାର
ଶୁଣି ଏଇ କଥା ମିଠା
ଶରମରେ ସିଏ  କାନ୍ଦି ପକାଇଲା
ପାଟି ହୋଇଗଲା ଅଠା ॥ ୮ ॥



# ବେଲଣା କାଠି ଓ ପେଡ଼ (ଚକି)

ମାଆ ଦଳୁଥିଲେ ସକାଳୁ ଅଟା
ଜଳଖିଆ ପାଇଁ ହେବ ପରଟା
ପାଖେ ଥୁଆ ଅଛି ବେଲଣା ପେଡ଼ି
ତଳେ ଗଡୁଅଛି ବେଲଣା ବାଡ଼ି
ବାଡ଼ିଟି ଡାକିଲ ଅପା
ଅପା ଡାକ ଶୁଣି ବେଲଣା ପେଡ଼ିଟି
ରଗରେ ହୋଇଲ ଖପା ॥ ୧ ॥

କେତେ ଅସୁନ୍ଦର ନଳିଆ ଦେହ
ଚନ୍ଦ୍ରପରି ମୋର ଗୋଲିଆ ମୁହଁ
ଉପରଟା ମୋର କି ସମତୁଲ
ଅଟା ଦଳି ମାଆ କରନ୍ତି ଗୋଲ
ମୋ ଉପରେ ତାହା ରଖ[illegible]
ଗୋଲ ଗୋଲ ରୁଟି ଛ[illegible]
ହୁଏ ତାଙ୍କ ମନ ଲଖୁ ॥ [illegible] ॥

ବାଡ଼ିଟି କହଇ ହୋଇ ନରମ
ପେଡ଼ି ନାନୀ ତୋତେ ନାହିଁ ସରମ
ତୋର ପରେ ରଖି ଚକଟା ଅଟା
କହିକେ ପାରିବ ରୁଟି ପରଟା
କରିଲେ ତୋତେ ମୁଁ ଗୋଲ
ହୋଇଯାଏ ଅଟା          ରୁଟି ଓ ପରଟା
ତିନି କୋଣୀ ଅବା ଗୋଲ ।। ୩ ।।

ତୋହର ଉପରେ ମୋହର ବାସ
କେହି କାହାଠାରୁ ନୁହେଁ ନୀରସ
ନ ମିଶିଲେ ଦୁହେଁ ନୋହିବ କିଛି
ରାଗ ଅଭିମାନ ମନରୁ ପୋଛି
ହେବା ଆଜିଠାରୁ ମିତ
ଅଟା ଦଳା ହେବା          ଯାଏ ଗପି ହେବା
ଖୁସିରେ ଗାଇବା ଗୀତ ।। ୪ ।।



# ହଂସ ଓ କୁକୁଡ଼ା

ପୁଷ୍କରିଣୀ ମଧ୍ୟେ ଖେଳୁଥିଲା ହଂସ
ସାଥେ ଧରି ତାର ଛୁଆ
କୁକୁଡ଼ା ଗୋଟିଏ ବୁଲିବୁଲି ଆସି
କୂଳେ ତାର ହେଲା ଠିଆ ॥ ୧ ॥

ନମସ୍କାର ନାନୀ କେଡେ ଭାଗ୍ୟବତୀ
ସକାଳୁ କରୁଛୁ ସ୍ନାନ
ପହଁରା ଟିକିଏ ଶିଖାଇ ଦେବୁକି
ସେଥିରେ ବଳିଛି ମନ ॥ ୨ ॥

ରାଗି କହେ ହଂସ ବଡ ଅଳଜୁକ
ଚିତିରି ମିତିରି ରଙ୍ଗ
ପାହାନ୍ତା ପହରୁ ରଡ଼ି ମାରୁଥାଉ
କେଡେ ଅସନା ତୋ ଢଙ୍ଗ ॥ ୩ ॥

ପୋକ ଯୋକ ବୁଲି ଖୁଣ୍ଟି ଖାଉ ଥାଉ
ଖାଏ ମୁଁ ପଦ୍ମ କେଶର
ସରସ୍ୱତୀଙ୍କର ବାହାନ ମୁଁ ଅଟେ
ତୁ ଅଟୁ କୁକୁଡ଼ା ଛାର ॥ ୪ ॥

କେତେ ତୋ ସାହସ କହୁଅଛୁ ମୋତେ
ଶିଖାଇ ଦେବି ପହଁର
ଛୁଇଁବିକି ତୋତେ ଗାଧୋଇ ସକାଳୁ
ଦିଶୁ ଅଛି କେତେ ତୋର ॥ ୫ ॥

ସହି ନପାରିତା ହଂସ କଟୁ କଥା
କହିଲା କୁକୁଡା ରଗେ
ତୋର ରୂପ ଠାରୁ ମୁଁ ସୁନ୍ଦର ଅଟେ
ସଜାଇଛି ନାନା ରଙ୍ଗେ ॥ ୬ ॥

ପୋକ ଯୋକ ଖାଏ ଜନ ହିତ କରେ
ପାହାନ୍ତାରୁ ଥାଏ ରଚି
ମୋର ରବ ଶୁଣି ଉଠନ୍ତି ମାନବ
ଡାକନ୍ତି କିରଣ ରବି ॥ ୭ ॥

ଚକ୍ରଧର ରଖ ପ୍ରଭାତୁ ଡାକଇ
ତୁ କାହିଁ ପାରିବୁ ଡାକି
ବୁଲୁଥାଉ ସଦା ସରୋବର ମଧ୍ୟେ
ପଦ୍ମନାଡ ଖଣ୍ଡେ ଯାକି ॥ ୮ ॥

ମୋର ଅଣ୍ଡା ଅଟେ ପୁଷ୍ଟି ସାର ଶ୍ରେଷ୍ଠ
ମାନବଙ୍କୁ ଦିଏ ପୁଷ୍ଟି
ମାନବର ହିତେ ଜନମ ମୋହର
କିପାଇଁ ନ ଦେଉ ଦୃଷ୍ଟି ॥ ୯ ॥

ସରସ୍ୱତୀଙ୍କର ବାହାନ ହୋଇଛବି
ପାଇଛୁ ସ୍ୱର କର୍କଶ
ଶୁଣି ଏହି କଥା ହଂସ ପାଇ ବ୍ୟଥା
ଦୁଃଖ କଲା ପରକାଶ ॥ ୧୦ ॥

କହିଲା ଭଉଣୀ କାଲି ପ୍ରଭାତରେ
ଦେବି ପହଁରା ଶିଖାଇ
କିପରି କୁକୁଡ଼ା ପହଁରା ଶିଖିବ
କା'ଲି କେବେ ହେଉ ନାହିଁ ॥ ୧୧ ॥



# ଟୋପି ଓ ଯୋତା



ବାଟୋଇ ମୁଣ୍ଡରେ ଚଢ଼ିଣ ଟୋପି
ମନେ ମନେ ଟୋପି ଚାଲିଲା ଗପି
କେଡେ ଭାଗ୍ୟବାନ ମୁହିଁ
ବାଟୋଇ ଭାଇଟି ଚାଲୁଅଛି ବାଟ
ମୁଣ୍ଡପରେ ମୋତେ ଥୋଇ ॥ ୧ ॥

ବାଟୋଇ ବସିଲା ଗଛଟେ ଦେଖି
ଶୋଇଗଲା ଯୋତା ଟୋପିକୁ ରଖି
ଯୋତା କହେ ଶୁଣ ଟୋପି
ବାଟୋଇ ଭାଇଟି ଉଠିବା ପର୍ଯ୍ୟନ୍ତ
ସମୟ କାଟିବା ଗପି ॥ ୨ ॥

ଟୋପି ଶୁଣି କହେ ନ ମାଡ଼େ ଲାଜ
ଗପ କରିବାକୁ ହେଉଛୁ ସଜ
ମୁଣ୍ଡରେ ରହିଛି ମୁହିଁ
ପାଦତଳ ଚିଜ ଏଡେ ତୋ ସାହାସ
ଲାଜ ଟିକେ ମାଡ଼େ ନାହିଁ ॥ ୩ ॥

ଯୋତା କହେ ମୁହିଁ ନୁହେଁ ଅଲୋଡା
ବାଟୋଇ ଗ୍ଭଲୁଛି ପିନ୍ଧି ମୋ ଯୋତା
କେତେ କଣ୍ଟା ଝଣ୍ଟା ସହି
ଖର ବର୍ଷା ଶୀତୁ ରକ୍ଷା କରେ ତାଙ୍କୁ
ପାଦ ତଳେ ତାଙ୍କ ରହି ।। ୪ ।।

ଉଠିଲା ବାଟୋଇ ଗ୍ଭଲିଲା ପଥ
ବାଟରେ ବହିଲା ଝାଞ୍ଜ ବହୁତ
ମୁଣ୍ଡରୁ ଟୋପର ଛାଡି
ଝାଞ୍ଜ ପୋଛି ହୋଇ ପଙ୍କେଟେ ପୁରାଇ
ଆଗକୁ ଗ୍ଭଲିଲା ମାଡ଼ି ।। ୫ ।।

ପାଦ ତଳେ ଥାଇ କହଇ ଯୋତା
ମୋର ସଙ୍ଗେ ଏବେ ହେବକି କଥା
ଲଜରେ ଟୋପିଟି କୁହେ
ଆମେ ଅ ଛିଠାଗ୍ଭ ଭଲ ଭଲ ହେବା
ସାନ ବଡ଼ କେହି ନୁହେଁ ।। ୬ ।।

*।*

# ବିଜୁଳି ପଂଖା ଓ

# ହାତ ପଂଖା (ବିଞ୍ଚଣା)



ଛାତରେ ଲଗିଛି ବିଜୁଳି ପଂଖା
ଥାକରେ ବିଞ୍ଚଣା ହୋଇଛି ରଖା
ଆସିଲା ଗ୍ରୀଷ୍ମ ବହିଲା ଝାଞ୍ଜ
ଦେହ ଗୁଳୁଗୁଳି ନୁହେଁ ସମ୍ଭାଳ
ଟିପିଲେ ସୁଇଚ୍ ପଂଖା ଘୂରିଲା
ଥାକଟାକୁ ଚାହିଁ ସିଏ କହିଲା
ହାତ ପଂଖା ତୁହି ଯାଇଛୁ ଶୋଇ
ମନ ଆନନ୍ଦରେ ଘୂରଇ ମୁହିଁ
ଅଲୋଡା ଅଖୋଜା ତୁହି
ବିଜୁଳି ଯୁଗରେ ମୋହର ଆଦର
ତୋର ଦରକାର ନାହିଁ

କଟିଲା ବିଜୁଳି ରହିଲା ପଂଖା
ବିଞ୍ଚଣାଟି ହେଲା ଜୀବନ ସଖା
ବୁଲାଇଲେ ଜନ ଧରି ହାତରେ

ବିଜୁଳି ପଂଖାଟା ରହେ ଛାତରେ
ହାତ ପଂଖା କହେ ବିଜୁଳି ଭାଇ
ବଡ଼ପଣ ତୋର ରହିଲା କାହିଁ ?
ହସ୍ତ କଳା ଶିଳ୍ପ ମୋ ଗୃହକଳା
ତିଆରି କରନ୍ତି ଗ୍ରାମ ଅବଳା
ସ୍ୱାଧିନ ଭବରେ ଘୂରେ
ପର ଶକ୍ତି ବଳେ ବହପ କରିଲେ
ତୋର ଦଶା ଭୋଗ କରରେ ।



# ମଶା ଓ ମାଛି



ବୁଲୁଥିଲା ଗଣ ଗଣିଆ ମାଛି
ଖାଉଥିଲା ପଶୁ ଅସନା ବାଛି
ଭେଟ ହେଲା ଏକ ମଶା
ନର୍ଦ୍ଦମା ପାଣିରେ ପରିବାର ସହ
ରହିଥିଲା କରି ବସା ।। ୧ ।।

ମଶା ମାଛିଙ୍କର ହେଲା ବଚସା
ମାଛିକୁ ଡାକିଣ କହଇ ମଶା
ଖାଉଛୁ ଅସନା ଖାଦ୍ୟ
ଗରମ ତଟକା ମଣିଷ ରକ୍ତର
ଚାଖିଛୁକି କେବେ ସ୍ୱାଦ ।। ୨ ।।

ସୂରୁଜ ବୁଡ଼ିଲେ ହୁଏ ଅନ୍ଧାର
ଅନ୍ଧାରୀ ବିଲେକୁ ହୁଏ ବାହାର
ଗୁଣୁଗୁଣୁ ଗୀତ ଗାଇ
ପିଉଥାଏ ରକ୍ତ ମନ ଆନନ୍ଦରେ
ସାଙ୍ଗ ସାଥି ମୋର ନେଇ ।। ୩ ।।

ଚଟକା ଖାଦ୍ୟକୁ ତୋହର ଡ଼ର
ମହାମାରି ବାଣ୍ଟୁ ଘରକୁ ଘର
ନାହିଁ ତୋ ମୁହଁକୁ ଲଜ
ଛାଡ଼ିଦିଅ ଗସ୍ତା        ଯଦି ମୋ କାର୍ଯ୍ୟରେ
ବେଳ ବୁଡ଼ି ହେଲ ଫଜ ॥ ୪ ॥

ଭଣଭଣ ହୋଇ କହଇ ମାଛି
ନପାରିବା କେହି କାହାକୁ ବାଛି
ନର୍ଦ୍ଦମାରୁ ଦୁହେଁ ଜନ୍ମ
ମାନବ ବିନାଶେ        ସୃଷ୍ଟି ହୋଇଅଛେ
ରୋଗ ବଣ୍ଟା ଆମ କାମ ॥ ୫ ॥

ଦିନରେ ତୁ ଲୁଚୁ ଚୋରଙ୍କ ପରି
ମଶାରୀ ଅଟଇ ତୋର ବଇରି
ବାହାରିଛି କେତେ ଧୂପ
ପାଖ ନ ପଶୁଣୁ        ସେ ଧୂପ ଗନ୍ଧରେ
ମୋ ଆଗେ ଦେଖାଉ କୋପ ॥ ୬ ॥

ତୁହି ବୁଲୁଥାଉ ଘରକୁ ଘର
ବାଣ୍ଟୁଥାଉ ବାତ ମତିଷ୍କ ଜ୍ୱର
କେତେବେଳେ ମେଲେରିଆ
ତାଙ୍କ କଳ ଗୋଳ        ଶୁଣୁଥିଲ ସେଠି
ଲୋକ ଗୋଟେ ହୋଇ ଠିଆ ॥ ୭ ॥

ଫିନାଇଲ୍ ଧରିଥିଲ ହାତରେ
ଢାଳିଦେଲ ଗଗେ ସେଠି ସତ୍ୱରେ
ବଞ୍ଚିଲେନି ମାଛି ମଶା
ମାନବର ପ୍ରାଣ        ଚିନ୍ତୁଥିଲେ ନେବେ
ଭଜିଲେ ମରଣ ଦଶା ॥ ୮ ॥

—●—

# ପୁଅ ଓ ଝିଅ



ପୁଅ ଓ ଝିଅର ଲଗିଲ କଳି

ପୁଅ ଝିଅକୁ ଦେଲ ଯେ ଗାଳି

କେତେ ଫୁଲୁଛୁ ଝିଅ

ସଂସାରେ ଉଚ୍ଚ ଆମରି ସ୍ଥାନ

ଯେଣୁ ଆମେରେ ପୁଅ ॥ ୧ ॥

ଆମରି ଜାତି ରଣା ପ୍ରତାପ

ଶିବାଜୀ ବଳ ବୀର୍ଯ୍ୟେ ଅମାପ

ଗାନ୍ଧୀ ଜହର ଲାଲ

ସୁଭାଷବୋଷ ସର୍ଦ୍ଦାର ଶାସ୍ତ୍ରୀ

ଲାଜ ବାଲ ଓ ପାଲ ॥ ୨ ॥

ତାଙ୍କରି ଯୋଗୁ ହେଲୁ ସ୍ୱାଧୀନ

ଫିଟିଲ ପରାଧୀନ ବଂଧନ

ଶୁଣି ହସିଲ ଝିଅ

ଆମରି ଦାନ ରହିଛି ସେଠି

ଶୁଣିବୁ ଯଦି ରହ ॥ ୩ ॥

ରଣା ପ୍ରତାପ ତୁଳେ ମହିଷୀ

ପ୍ରେରଣା ଦେଲେ ଶୁଭ ମନାସି

ଜନନୀ ଜୀଜା ବାଈ

ଶିବାଜୀ ତାଙ୍କ ପ୍ରେରଣା ପାଇ

ସମରେ ଯାଏ ଧାଇଁ ॥ ୪ ॥

ଗାନ୍ଧିଜୀ କଥା ଗଲ ଯା କହି
ଭୁଲିଣ ନେଇ କସ୍ତୁରୀ ବାଇ
ନାଇଡୁ ସରୋଜିନୀ
କମଳା ମାତା ଇନ୍ଦିରା ସୁତା
ଲଳିତା ଶାସ୍ତ୍ରୀ ପୁଣି ॥ ୫ ॥

ଝାନ୍ସୀ ରାଣୀ ଲକ୍ଷ୍ମୀ ବାଇ
ଫିରିଙ୍ଗୀ ସଙ୍ଗ କଲେ ଲଢ଼ାଇ
ନୁହେଁ ଦୁହିତା ହୀନ
ଆମରି ଯୋଗୁଁ ବିଦେଶେ ଆଜି
ବଢେ ଭାରତ ମାନ ॥ ୬ ॥

କେବେ ନଥିଲେ ଆମେ ଦୁର୍ବଳା
ନିଜ ଗୁଣରେ ଆମେ ସବଳା
ନଡରି କେଉଁ କାମ
କୃଷି ଶିକ୍ଷାରେ କାରିଗରୀରେ
ରଖିବୁ ଦେଶ ନାମ ॥ ୭ ॥

ପୁଅଟି ଶୁଣି ଝିଅର କଥା
ସରମ କରି ନୋଇଁଲ ମଥା
କହେ ଭଉଣୀ ଶୁଣ
ଉଭୟ ମିଶି କରିଲେ କାମ
ବଢିବ ଦେଶ ମାନ ॥ ୮ ॥

—※✻—

# ଜେଜେ ଓ ନାତି



ବଡ ଚଗଲ ଆମ ବାବୁଲ
କହଇ ଶୁଣ ଜେଜେ
ମୋର ବାପାର ଖାଇଣ ପୁଣି
କାଢୁଛ କେତେ ତେଜ
ଚଗଲ ଟିକେ ହୋଇଲେ ଘରେ
ବାପାଙ୍କୁ ଦିଅ କହି
ସାଙ୍ଗ ସାଥିରେ ଖେଳିଲେ ଖେଳ
ଡାକି ଆଣୁଛ ଧାଇଁ
ମୋ ପାଇଁ ଯାହା ଆଣନ୍ତି ବାପା
ଖାଉଛ କିଆଁ ମାଗି
ଚଷମା ବାଡ଼ି ଲୁଚାଇ ଦେଲେ
ଯାଉଛ କିଆଁ ରାଗି
ତୁମରି ପାଇଁ କିମ୍ବାଇ ବାପା
ଆଣନ୍ତି ଜାମା ଯୋଡ଼ା
ବୁଢ଼ା ହେଲଣି ମରିତ ଯିବ
ଔଷଧ କିଆଁ ଲୋଡ଼ା
କହଇ ଜେଜେ ମୋ କଥା ହେଜ
ଯାହା କହିଲୁ ନାତି
ପିତା ମାତାଙ୍କୁ ପୁଅ ପୋଷଇ
ସଂସାରରେ ଏ ନୀତି

ତୋ ବାପା ପରି ଯୁବକ ବେଳେ
କରୁ ଥିଲି ମୁଁ କାର୍ଯ୍ୟ
ମୋ ବାପା ଥିଲେ ତୋ ପରି ପିଲା
ଦେଉଥିଲି ତା ନାର୍ଯ୍ୟ

ସେହି କରଜ ଶୁଝୁଛି ପୁଅ
ବାପ ହୋଇଛି ବୁଢା
ସଂସାରର ଏ ନୀତି ନିୟମ
ନୁହଁଇ ମନ ଗଢ଼ା

ତୋତେ ପୋଷୁଛି ତୋହରି ବାପ
ବଡ ହୋଇଲେ ତୁହି
ଋଣ ଶୁଝାଇ କରିବୁ ସେବା
ଯମା ଭୁଲିବୁ ନାହିଁ

ଏପରି ଋଣ ଶୁଝା ଚାଲିଛି
ମୁଁ ଅଟେ ମହାଜନ
ବାପାଙ୍କ ତୁହି ଋଣ ଗ୍ରହିତା
ମନରେ ଆଜି ଘେନ

ମନ ଲଗାଇ ପଢିବୁ ପାଠ
ତୁ ମୋର ଗେହ୍ଲା ନାତି
ମାହୁନ୍ତ ସାଜି ପିଠିରେ ବସ
ହେଉଛି ତୋର ହାତୀ

*।*

# ଚଷମା ଓ ବାଡ଼ି

ବଜାରୁ ବୁଲି ଅଜା ଆମରି ଆସିଲେ ଯେବେ ଘରେ
ବାଡ଼ି ରହିଲା କବାଟ କଣେ ଚଷମା ଥାକ ପରେ ।

ରତି ଅଧରେ ଥାକରେ ରହି ଚଷମା ଡାକେ ବାଡ଼ି
ସିଂହାସନରେ ରହିଛି ଦେଖ କଣେ ରହିଛୁ ପଡ଼ି ।

ଯତନ ଭରେ କନାରେ ପୋଛି ଖୋଳରେ ହୁଏ ରଖା
ଦାମ୍ ବି ଅଟେ ଚଢ଼ା ତୋ ଠାରୁ କିପରି ହେବୁ ସଖା ।

ସରମି ବାଡ଼ି ନରମି କହେ ଶୁଣରେ ପର ଚକ୍ଷୁ
ଉଭୟେ ସାଥି ହୋଇଲେ ଯାଇ ତାଙ୍କ ଜୀବନ ରଖୁ ।

ତୋତେ ପିନ୍ଧିଣ ମୋତେ ଛାଡ଼ିଣ ଅଜା କି ଯିବେ ବୁଲି
ଉଭୟେ ଆମେ ତାଙ୍କରି ପ୍ରିୟ ନଯା ଏ କଥା ଭୁଲି ।

(ପ୍ରକାଶିତ ମିନା ବଜାର)



# ପେଟ ଓ ଅଙ୍ଗ ପ୍ରତ୍ୟଙ୍ଗ



ଆମ ଶରୀର ଅଙ୍ଗ ପ୍ରତ୍ୟଙ୍ଗ    ହୋଇଣ ଦିନେ ମେଳି
ପେଟକୁ ଡାକି ନାକକୁ ଟେକି    ଦେଲେ ଅନେକ ଗାଳି
ପେଟତୁ ପେଟୁ କେବେ ନଛୁଟୁ    ଖାଇ ମାରୁଛୁ ହାଇ
ଯାହା ଅଛୁ ଛୁ ବସି ଖାଉଛୁ    ଦେଖାଉ ପୁଣି ଛଇ
କହିଲ ହାତ କି ଦିବା ରତ୍ର    ଖଟି ଆଣଇ କେତେ
କହଇ ଆଖି ଆଣିବା ଦ୍ରବ୍ୟ    ଦେଖେ ମୋହର ନେତ୍ରେ
କାନ ଓ ନାକ ପାଟି କହନ୍ତି    ଖଟୁଛୁ ଆମେ ବେଠି
କହଇ ଗୋଡ ହୋଇଣ ଦୃଢ଼    ନିଏ ସଭିଙ୍କୁ ସେଠି
ଅଳସୁଆଟା ସାଜଇ ରଜା    ଖାଉଛି ଖାଲି ବସି
ଅସହଯୋଗ କରିବା ପେଟ    ଯିବ ଭିତରେ ପଶି
ସଭବେ ମିଶି ନକଲେ କାମ    ଶୁଖିତ ଗଲ ପେଟ
ତାର ସହିତ ସକଳ ଅଙ୍ଗ    ହୋଇଲେ ଛଟପଟ
କହଇ ହାତ ଦୁର୍ବଳ ଲାଗେ    ଗୋଡ ନପାରେ ଚାଲି
ଜିଭ ଓ ପାଟି ଶୁଖନ୍ତି ଯେଣୁ    ପେଟ ହୋଇଛି ଖାଲି
କହଇ ପେଟ ଦେଖିଲ ନାଟ    ଭର ମୋ ଦେହେ ଖାଦ୍ୟ
ମୋ ପାଇଁ ତୁମେ ମୁଁ ତୁମ ପାଇଁ    ମନରୁ ତେଜ ଖେଦ

—୦—

# ଗ୍ରହା ଓ ସରବତ



ମାଘ ମାସର ବାଘୁଆ ଶୀତେ
ଆମରି ରେଷ ଘରେ
ଗାଳି ଦିଅଇ ସରବତକୁ
ଗ୍ରହାଟି କୋପ ଭରେ ।
ଦେଖି ପାରୁଛ ମୋର ଆଦର
ଥଣ୍ଡାରେ ଲୋକ ବସି
କପ୍ ରେ ଧରି ପ୍ଲେଟ୍‌ରେ ଢାଳି
ନିଅନ୍ତି ସୁଖେ ଶୋଷି ।
ଲୁଚଇ ମୋତେ ପ୍ରବଳ ଶୀତ
ଛାଡ଼ିଣ ଯାଏ ତନ୍ଦ୍ରା
ତା ପରେ ସର୍ବେ ଯାଆନ୍ତି କାମେ
କରନ୍ତି ନିଜ ଧନ୍ଦା ।
ଆସାମ ରାଜ୍ୟ ମୋହରି ଜନ୍ମ
ସାରା ଭାରତେ ଘର
ସଭିଙ୍କୁ ମୁହିଁ ଦିଏ ଆନନ୍ଦ
ନଭାବିନିଜ ପର ।
ନରମି କହେ ସରବତଟି
ଲୋଡା ଆସିଲେ ଶୀତ
ଗ୍ରୀଷମ କାଳେ ମୋର ଆଦର
ସଭିଙ୍କୁ କରେ ପ୍ରୀତ

ସାରିଣ କାମ ଆସନ୍ତି ଜନ
ନିଜ ଘରକୁ ଫେରି
ଘଚଣୀ ତାଙ୍କ ପହଞ୍ଚି ଯାଏ
ମୋତେ ଗିଳସେ ଭରି ।
ପିଇ ତାହାକୁ ମେଣ୍ଟଇ ତୃଷା
ଓଠରେ ଫୁଟେ ହସ
ପେଟକୁ ଥଣ୍ଡା କରଇ ମୁହିଁ
ଥକ୍‌କା କରଇ ନାଶ ।
ଚୁଲି ଲଗାଅ କ୍ଷୀର ମିଶାଅ
ନଥାଏ ଦେହି ଧନ୍ଦା
ପିଇଲେ ତୋତେ ଖରରେ କେହି
ପେଟ ହୁଅଇ ମାନ୍ଦା ।
ଏପରି କଳି ହେଲ ପ୍ରବଳ
ନକମି ଯାଏ ବଢ଼ି
ବୋତଲେ ଥାଇ ଚିନି ଭଉନା
ଛାଡ଼ିଲ ଏକ ରଡ଼ି ।
ମୋର ବିହୁନେ ଲୋକେ ତୁମକୁ
କରିବେ ନାହିଁ ଶ୍ରଦ୍ଧା
ମୋହରି ଯୋଗୁଁ ପାଅ ଆଦର
ନମିଛେ କାହିଁ ବାଧା ।
ଗୁହା ପିଆକୁ ଗୁହାଟା ଭଲ
ସରବତକୁ ସର୍ବେ
ଦୁହେଁଟି ଲୋଡ଼ା ମାନବ ପାଇଁ
କଳି ନକର ଇବେ ।

# ଜଳଖିଆ ଓ ପଖାଳ

ଜଳଖିଆଟି କୋପଭରେ
ଡାକି କହଇ ପଖାଳରେ
ଜାଣିଛୁ ମୋର ଗୁଣ
ସୁଜି ପରଟା          ସିମାଇ ମିଠା
ଜାତି ମୋ କେତେ କଣ ॥ ୧ ॥

ଖାଆନ୍ତି ବାବୁ ଚେୟ ରେ ବସି
ଖାଇ ସାରିଣ ହୁଅନ୍ତି ଖୁସି
ତାପରେ ଆସେ ଗୃହା
ପେପର ପଢି          ପିଇ ଥାଆନ୍ତି
ଛୁଟଇ ମୁଖୁ ଆହା ॥ ୨ ॥

ତୋତେ ଖାଆନ୍ତି ଦରିଦ୍ର ଲୋକ
ନୋରଣି ପିଇ ମେଣ୍ଟାନ୍ତି ଭୋକ
ସାଥେ ଶୁଖୁଆ ପୋଡ଼ା
ଆଳୁ ଚକଟା          ବଡ଼ି ଗଇଟା
ହୁଅଇ ପୁଣି ଲେଡା ॥ ୩ ॥

ମାଡ଼ିଛୁ କେବେ ବାବୁଙ୍କ ପାଶ
ପାଇଛୁ କେବେ ତାଙ୍କ ପରଶ
କୃଷକ ତୋର ସାଥି
ଖାଇ ସହଜ          ଧରି ଲଙ୍ଗଳ
କାମେ ଯାଆନ୍ତି ମାତି ॥ ୪ ॥

ସରମି କହେ ପଖାଳ ଭଇ
ଜଳଖିଆ ତୁ ନଦେଖା ଛଇ
ଧନୀ ପାଇଁ ତୋ ଗର୍ବ
ତୋଷିଛୁ କେବେ                    ଗରୀବ ଜନ
ମନରେ ଥରେ ଭବ ॥ ୫ ॥

କୃଷକ ଦିଏ ଦେଶକୁ ଦାନା
ତା ପାଇଁ ଉଡେ ତ୍ରୀରଙ୍ଗା ବାନା
ମୋର ଶ୍ରମିକ ଭଇ
ବଞ୍ଚାଏ ମୁହିଁ                    ତାଙ୍କର ପ୍ରାଣ
ମୋ ସରି କେହି ନାହିଁ ॥ ୬ ॥

ଓଡ଼ିଶା ଦେଶେ ଜଗତ ନାଥ
ଖାଆନ୍ତି ଦେଖ ପଖାଳ ଭାତ
ମୁଁ ନୁହଁ କେବେ ସାନ
ଜଳଖିଆ ତୁ                    ସାହାବେ ଖାନା
ନମଣ ମୋତେ ହୀନ ॥ ୭ ॥

—※※—

# କୃଷକ ଓ ସୈନିକ



ଦିନେ କୃଷକ    ସାଥେ ସୈନିକ    ହୋଇଗଲତ ଭେଟ
ସୈନିକଟାକୁ    କୃଷକ ଦେଖି    ଆରମ୍ଭିଲ ତା ନାଟ

ତୁଛାରେ ତୁହି    ଦେଶର ଧନ    କରୁଛୁ ବରବାଦ
ସେ ଶସ୍ୟ ଧନ    ଅମଳ ପାଇଁ    ବୁହାଏ ମୋର ସ୍ୱେଦ

ଧରି ଲଙ୍ଗଳ    କ୍ଷେତରେ ମୋର    ଫଳାଏ କେତେ ଶସ୍ୟ
ବନ୍ଧୁକ ଧରି    ବିନା କାରଣେ    କରୁ ଜୀବନ ନାଶ

ମିଛରେ ଯାଏ    ତୋପାଇଁ ଦେଶ    ସାରେ ଅଜସ୍ର ଟଙ୍କା
ଆରମେ ରହୁ    ପାଇ ସେ ଟଙ୍କା    କେଉଁ କାର୍ଯ୍ୟକୁ ଲେଖା

ବୁଝାଇ କୁହେ    ସୈନିକ ଭାଇ    ଜଗିବା ମୋର କାମ
ଆସିଲେ ଶତ୍ରୁ    ଦେଶକୁ ମାଡ଼ି    ଭାଗ୍ୟ ତୋହେବ ବାମ

ରହିବେ ନାହିଁ    ସ୍ୱାଧୀନ କେହି    ଦେଶ ହୋଇବ ଧ୍ୱଂସ
କିପରି ତୁହି    ତୋହର ଦେଶେ    କରିବୁ ଜମି ଚାଷ

ଦେଶକୁ ମୁହିଁ    ଯୋଗାଏ ଖାଦ୍ୟ    ତୋର ରକ୍ଷକ ମୁହିଁ
ଦୁହେଁ ଦେଶର    ପରିପୂରକ    ଏକା ମାଟିର ଭାଇ

ଏଣୁ ଶାସ୍ତ୍ରୀଜୀ    କରିଟି ଥିଲେ    ଆମ ଦୁହିଁଙ୍କ ଜୟ
କାମ କରିବ    ଏ ଦେଶ ପାଇଁ    ଏହେଉ ଆମ ଲୟ

—୦—

# ବୁଢା ଓ ବୁଢୀ

ଗୋଟିଏ ବୁଢୀ ଗୋଟିଏ ବୁଢା
ନିତି ଦିନ ତାଙ୍କ ଲଗେ ଝଗଡା
ରାଗରେ ବୁଢ଼ା କୁହେ
ଆଳସୀ ବୁଢ଼ୀ କି ରାତି ଦିନ
ଶୋଇ ସମୟ ନିଏ ॥ ୧ ॥
ବିଲରେ ମୁହିଁ ବୁଲାଏ ହଳ
ସକାଳ ଠାରୁ ସନ୍ଧିଆ ବେଳ
କ୍ଷେତରେ ଦିଏ ପାଣି
ବୁଣେ ବିହନ ବାଛଇ ଘାସ
ବେଳ କାଳକୁ ଜାଣି ॥ ୨ ॥
ଏ କଥା ଶୁଣି ରାଗିଲା ବୁଢୀ
ବୁଢ଼ା ଆଗକୁ ଆସିଲା ମାଡ଼ି
କହିଲା ଶୁଣ ବୁଢା
ତୋହରି ପାଇଁ ଚୁଲି ପାଖରେ
କଟଇ ଚନ୍ଦ୍ରା ବଢା ॥ ୩ ॥
ହଳରେ ନେଉ ଯେଉଁ ବଳଦ
କାଟିଣ ଘାସ ଯୋଗାଏ ଖାଦ୍ୟ
ତୋ ଘର ଜଗା ରଖା
ଖଟୁଛି ଯେତେ ତୋହରି ପାଇଁ
ଯାଉନି ତୋତେ ଦେଖା ॥ ୪ ॥

ଆଜିଠୁ କାମ ହେଉ ବଦଳ
ମୁଁ ବିଲକୁ ଯିବି ଧରି ହଳ

କେଉଁ କାମଟା କଷ୍ଟ
ଜଣା ପଡ଼ିବ ଗୋଟିଏ ଦିନେ
ତୁ ବୁଢା ବଡ ଦୁଷ୍ଟ ॥ ୫ ॥

ଆସିଲା ଯେବେ ପର ସକାଳ
ବୁଢ଼ୀ ଚାଲିଲା ଧରିଣ ହଳ

ବୁଢ଼ାଟି ନେଷ ଘରେ
କିପରି ରନ୍ଧା ରନ୍ଧିବ ସିଏ
ମନ ମଧ୍ୟରେ ଭାବେ ॥ ୬ ॥

କୁକୁଡା ଘରେ ରବେ କୁକୁଡା
ହୋଇନି ଘର ଦୁଆର ଝଡ଼ା

ଦୁହାଁ ହୋଇନି ଗାଈ
ବାଲ୍‌ଟି ଧରି ଦୁହିଁବା ପାଇଁ
ଗୁହାଳେ ଗଲା ଧାଇଁ ॥ ୭ ॥

ମାଇଲା ନାଡ ନାଚେଇ ଗାଈ
ବୁଢ଼ାଟି ରଗେ ଆସେ ପଳାଇ

ରେଷେଇ ଘରୁ ଧୂଆଁ
ବସିତ ଥିଲା ଚୁଲିରେ ଭାତ
ପୋଡ଼ି ଅଙ୍ଗାର ନିଆଁ ॥ ୮ ॥

ଏଣେ ବୁଢୀର ବହଇ ଝାଳ
ବୁଝଇ ନାହିଁ ଜୀବନେ ହଳ

ବଳଦ ମାରେ ନାତ
ଆଗକୁ ଯମା          ଯାଉ ନାହାନ୍ତି
ମାରିଲେ ଯେତେ ବେତ ।। ୯ ।।

ଫେରି ଆସିଲା କ୍ଷେତରୁ ବୁଢୀ
ମୁଣ୍ଡରୁ ଝାଳ ପଡେ ନିଗିଡ଼ି

ମାଗଇ ଦିଅ ଭାତ
ଘେଷେଇ ବାସ          ହୋଇନି ଆଜି
ବୁଢା ହଲଏ ହାତ ।। ୧୦ ।।

ବୁଢା ସେଦିନୁ ନକରେ ରୋଷ
ଆଉ ବୁଢୀର ନକାଢେ ଦୋଷ

କୁହେ ମୋ ସୁନା ବୁଢୀ
ଖୁସି ମଜାରେ          ସେ ଦିନୁ ତାଙ୍କ
ସମୟ ଯାଏ ଗଡ଼ି ।। ୧୧ ।।

*
* *

# ବରଗଛ ଓ ଫୁଟିକାକୁଡ଼ି

ବର ସମୀପେ ଫୁଟି କାକୁଡ଼ି
ଭୂଇଁରେ ଲଟା ଯାଇଛି ମାଡ଼ି
ଫଳିଛି କେତେ ଫଳ;
ବରଗଛ ତା ମେଲିଛି ଡାଳ
ପଥିକ ଜନ ବସି ତା ତଳ
ମାରନ୍ତି ଶ୍ରମ ଝାଳ ।

ଛୋଟିଆ ନାଲି ତାହାର ଫଳ
ଖାଇ ବୁଲନ୍ତି ବିହଙ୍ଗ କୁଳ
ଦିନ କି ଅବା ରାତି,
କୋଇଲି ଗାଏ ପଞ୍ଚମ ତାନେ
ବଗଟି ଶୁଣେ ବସି ମଉନେ
ବର ଫୁଲାଏ ଛାତି ।

ସହି ନପାରି ଫୁଟି କାକୁଡ଼ି
ବରକୁ ରାଗେ କହଇ ଝାଡ଼ି
ନାହିଁକି ଲାଜ ତୋତେ,
ଶରୀର ତୋର ସତେ ଅଚଳ
ମୋହର ଫଳ ତୋହର ଫଳ
ତଫାତ ଦେଖ କେତେ ।

ବରଟି କହେ କାକୁଡ଼ି ଭାଇ
ପଥିକ ତଳେ ଅଛନ୍ତି ଶୋଇ
ପଡୁଛି ମୋର ଫଳ
ତୋପରି ଯଦି ହୁଅନ୍ତା ଫଳ
କଷ୍ଟ ଲଭିଲେ ପଥିକ କୁଳ
ଫଳ ହୁଅନ୍ତା କାଳ ।

ଶୁଣି ବରର ଏହି ବଚନ
ଫୁଟିକାକୁଡ଼ି ହେଲା ମଉନ
ବର କହିଲା କହି;
ମଣିଷ ପାଇଁ ତୁ ଦେବୁ ଫଳ
ମୁ ମଧ୍ୟ ଦେବି ଛାଇ ଶୀତଳ
କଳି କରିବା ନାହିଁ ।



# ଖରା ଓ ବର୍ଷା

ଆସିଲା ରଙ୍ଗ ବଡ଼ ମଉଜ
ଖରା ବର୍ଷାର ଦୋଳି,
ବରଷା କହେ ଖରାକୁ ଡାକି
ପଡ଼ିଲା ମୋର ପାଳି ।
ଦେଖାଇ ଭଉ ସାଧିଲୁ ଦାଉ
ଶୁଖାଇ ଦେଲୁ ଜଳ
ଆସିଛି ପାଳି ଦେବି ମୁଁ ଢାଳି
ଭରିବି ନଈ ନାଳ ।
ତୋର ତେଜରେ ଧରଣୀ ପରେ
ଶୁଖିଛି ଦୁବଦାରୁ
ଢାଳିବି ବର୍ଷା ହସିବ ଧରା
କଅଁଳି ଯିବ ତରୁ ।
କହେ ଗ୍ରୀଷମ ନ ଦେ ସରମ
ନଭେ ସଞ୍ଚିବା ପାଇଁ
ନଈ ପୋଖରୀ ଦରିଆ ଜଳ
ସବୁ ଥିଲି ମୁଁ ନେଇ ।
ଅଦରକାରୀ ପାଣି ମୁଁ ଶୋଷି
ଯୋଗାଇ ଦେଲି ତୋତେ
ବରଷା କର ହସୁ ଦୁନିଆଁ
ଲଗିବା ଜନ ହିତେ ।

# ଖାଦ୍ୟସାରଙ୍କ କଳି

ଖାଇବା ବେଳେ ଅଝଟ କରେ ଏଟା ଖାଇବି ନାହିଁ
ପନି ପରିବା ଲାଗୁନି ଭଲ ମାଂସତର୍କାରୀ କାହିଁ ।

ଖାଇଣ ମାଂସ ଝଗପ ହେଲା ଲିପିର ଦେହ ଦିନେ
ଡାକ୍ତର ପାଶ ବାପା ତାହାକୁ ଘେନିଲେ ତତକ୍ଷଣେ ।

ଡାକ୍ତର ବାବୁ କହନ୍ତି ଶୁଣ ସବୁ ପ୍ରକାର ଖାଦ୍ୟ
ଖାଇଲେ ଆମେ ହୋଇବା ସୁସ୍ଥ ନରଖୁ ଭେଦାଭେଦ ।

ଶେଯରେ ଶୋଇ ଦେଖିଲା ସ୍ୱପ୍ନ ଖାଦ୍ୟ ସଭିଏଁ ମିଳି
ସ୍ନେହ ଓ ପୁଷ୍ଟି ଶର୍କରା ଶ୍ୱେତ କରନ୍ତି ବସି କଳି ।

କହଇ ପୁଷ୍ଟି ନିଶକୁ ଅଣ୍ଟି ଖାଦ୍ୟ ଭିତରେ ରଜା
ମୋତେ ଖାଇଲେ ବଢ଼ଇ ବଳ ଶରୀର ରୁହେ ତାଜା ।

ଲିପିର ମୁହିଁ ଅତିବ ପ୍ରିୟ ଛେନା ମାଛ ଓ ମାଂସ
ବାକି ସମସ୍ତେ ତାହାର ଶତ୍ରୁ ଶୀଘ୍ର ଏଠାରୁ ଖସ ।

ନରମ କରି ଗଳାକୁ ତାର କୁହଇ ଶ୍ୱେତ ସାର
ଶକ୍ତି ଯୋଗାଏ କାମ ପାଇଁକି ନୁହେଁକି ଉପକାର ।

ଗୁଡ଼ଙ୍କ ଆଳୁ ଗହମ ଚିନି ଖାଦ୍ୟ ଯେ ଭଳି ଭଳି
ଲିପିର ମୁହିଁ କରଇ ହିତ କାହିଁକି କରୁ କଳି ।

ତାପରେ ଉଠି    ଖୋଲଇ ପାଟି    ସଧୁରେ ସ୍ନେହ ସାର
ଚର୍ବି ଲହୁଣି    ନଡ଼ିଆ ଘିଅ    ମଧ୍ୟେ ମୋହର ଘର ।

ଲିପିର ଦେହ    କରେ ଚିକ୍‌କଣ    କେଡେ ସୁନ୍ଦର ଢୋଗ
ଦରକାରରେ    ଯୋଗାଏ ବଳ    ଅଟେ ତା ସାଥି ପଗ ।

ଶର୍କଗ ଉଠି    କହେ ଆକଟି    ମୋର ବି ଦାମ ଅଛି
ଲିପି ପାଇଁମୁ    କରଇ କାମ    କରନା ମୋତେ ଛିଛି ।

ନୀରବେ ଥିଲ    ଜୀବ ସାରଟି    ଖୋଲଇ ଶେଷେ ପାଟି
ମୋର ବିହୁନେ    ସର୍ବେ ବେକାର    ଲିପି ଜୀବନ ମାଟି ।

ରେଗ ଦାନ୍ତରୁ    କରେ ମୁଁ ରକ୍ଷା    ନାମ ମୋ ଭିଟାମିନି
ଶାଗ ସବଜୀ    ଫଳରେ ଥାଏ    ନପାର କିବା ଜାଣି ।

ଉଠଇ ଲିପି    କହେ ଆକଟି    ସଭିଏଁ ମୋର ପ୍ରିୟ
ସଭିଙ୍କ ପାଇଁ    ବଞ୍ଚିଛି ମୁହିଁ    ତୁମ ପାଇଁ ମୋ ଦେହ ।

ଜଣକୁ ନିଜ    ଜଣକୁ ପର    କରିଲେ ହେବ ରେଗ
ନିଜ ସ୍ଥାନକୁ    ପ୍ରସ୍ଥାନ କର    ମନରୁ ତେଜି ଗଗ ।

—o—

# କୂଅ ଓ ପୋଖରୀ



କୂଅ ପୋଖରୀ ଲଗିଲ କଳି
ଦୁହେଁ ଦୁହିଁଙ୍କୁ ଯାଆନ୍ତି ବଳି

ପୋଖରୀ କୁହେ କୂଅ
ମୋ ପରି କେବେ ହେବୁ ତୁ କହ
ବିଶାଳ ମୋର ଦେହ ॥ ୧ ॥

ପାଣିରେ ମୋର ଖେଳଇ ମାଛ
ଜହ୍ନ ମାମୁଁ ବି କରଇ ନାଚ
କଇଁ କମଳ ଫୁଟେ
ସକଳ ଜନ କରି ସ୍ନାହାନ
କାଚନ୍ତି ଲୁଗା ତୁଠେ ॥ ୨ ॥

କୂଅଟି କହେ ଆଲେ ତଡ଼ାଗ
ଏଇ କଥାକୁ କରୁଛୁ ଗର୍ବ
ମନରେ ବହି ଇର୍ଷା
ତୃଷାର୍ତ୍ତ ଜନେ ଦେଇ ସଲିଳ
ହରିଛୁ କାର ତୃଷା ॥ ୩ ॥

ତୋହରି ପାଣି ଅପରିଷ୍କାର
ପିଇବା ପାଇଁ ଅସ୍ୱାସ୍ଥ୍ୟକର
ଶୁଦ୍ଧ ମୋହରି ନୀର
ସେ ଜଳ ଦେଇ ରଖେ ଜୀବନ
ଏ ଅଟେ ଧର୍ମ ମୋର ।। ୪ ।।

ଦେଖାଉ ତୋର ଦେହ ବିଶାଳ
ନିଦାଘ ଦିନେ ଥାଏ କି ଜଳ
କେତେ ଗଭୀର ମୁହିଁ
ବଡେଇ ପଣ ମନରୁ ଭୁଲ
ଆମେ ଭଉଣୀ ଭାଇ ।। ୫ ।।

ମାନବ ସେବା ଆମରି ଧର୍ମ
ମାନବ ହିତେ କରିବା କର୍ମ
କୂଅ ପୋଖରୀ ଆମେ
ଝଗଡା ଭୁଲି କରିବା ହିତ
ହିଂସା ନରଖ ମନେ ।। ୬ ।।

# ମନ୍ଦିରରେଥିବା କାନ୍ଥ ପଥର ଓ ପାହାଚ ପଥର

ମନ୍ଦିର ଗାତ୍ରର ଖୋଦେଇ ପଥର
ଗୁହିଁଲୁ ତଳକୁ ଦିନେ
ପାହାଚେ ପଡ଼ିଛି ମାଙ୍କଡା ପଥର
ଦେଖି ହସି ଦେଇ ମନେ ॥ ୧ ॥

କେତେ ଧୂଳି ମଳି ହୋଇଛୁ ମାଙ୍କଡା
କେହି ନ ଦେଖନ୍ତି ତୋତେ
ପର୍ଯ୍ୟଟକ ଗଣ ଦେଖି ଖୁସି ହୋଇ
ପ୍ରଶଂସା କରନ୍ତି ମୋତେ ॥ ୨ ॥

ପାହଚରେ ଥାଇ ପଥରଟି କହେ
ତୋତେ ଦେଖି ମାତ୍ରେ ଦୁଃଖ
ମନ୍ଦିର କାନ୍ଥରେ ରହି ମଧ୍ୟ ତୁହି
ନଦେଖିଲୁ ପ୍ରଭୁ ମୁଖ ॥ ୩ ॥

ଦର୍ଶକ ଜନଙ୍କ ମୁହଁ ଦେଖି ଦେଖି
ଦିନ ଯାଏ ତୋର ବିତି
ପାହାଚରେ ଥାଇ ପ୍ରଭୁ ମୁଖ ମୁହିଁ
ଦେଖୁଥାଏ ନିତି ନିତି ॥ ୪ ॥

ହରି ଠାରୁ ବଡ ହରି ଭକ୍ତ ଜନ
ପାଏ ତାଙ୍କ ପଦ ରେଣୁ
ସଂସାର ମଧ୍ୟରେ ସବୁଠାରୁ ସୁଖୀ
ନିଜକୁ ମଣଇ ତେଣୁ ॥ ୫ ॥

କରିଛୁ କି ସେବା ଭକ୍ତଜନଙ୍କର
ପାଇଛୁକି ସଙ୍ଗ ସୁଖ
କେତେ ଦୁଃଖୀରଙ୍କି ମୋ ଉପରେ ଗ୍ଳାନି
ଜଣାନ୍ତି ପ୍ରଭୁଙ୍କୁ ଦୁଃଖ ॥ ୬ ॥

ସୌନ୍ଦର୍ଯ୍ୟ ପସର ମେଲଛ କି ଲଭ
ନ ଲଘୁ ମହତ କାର୍ଯ୍ୟେ
ମନ୍ଦିର ପଥର ଶୁଣି ଏହି କଥା
ଲୁଗ୍ଲଇଲା ମୁହଁ ଲାଜେ ॥ ୭ ॥



# ଆମିଷ ଓ ନିରାମିଷ



ଅରେ ଆମିଷ ଫୁଲଇ ନିଶ ଡାକଇ ନିରମିଷ
ମୋହରି ସାଥେ ହେବୁନି ସରି ନଆସ ମୋର ପାଶ ।
ମୋହରି ଦାମ୍ ବହୁତ ବେଶୀ ମାଂସ ସତୁରି ଟଙ୍କା
ମାଛ ମୋଖଲ ତିରିଶି ଟଙ୍କା ଗରୀବ ମୁହଁ ବଙ୍କା ।
ଅଣ୍ଡା ଭଉଣୀ ଡ଼ଜନ ବାର ତୋହର ଦାମ୍ କେତେ
ଶାଗ ବିଡାଟା ଟଙ୍କାକୁ ଗୋଟେ ଖାଇବା ମନ ଯେତେ ।
ବିଭ ଭୋଜିରେ ମୋର ଆଦର ସମସ୍ତେ ଆନ୍ତି ଟାଳି
ମୋର ବିହୁନେ ହୋଇଲେ ଭୋଜି ଦିଅନ୍ତି ନାକ ଟେକି ।
ନରମେ କହେ ନିରମିଷଟି ନକାଢ଼ ଆଉ ତେଜ
ଧନୀ ଗରିବ ସର୍ବେ ଖାଆନ୍ତି ମନରେ ଏହା ହେଜ ।
ଧନୀ ଲୋକତ ସଦା ସର୍ବଦା ଖାଇବ ଯେବେ ତୋତେ
ଚର୍ବି ଦଢିବ ମାଡ଼ି ଆସିବ ରଇଜ ରୋଗ ଯେତେ ।
ପ୍ରାଣୀ ଭିତରେ ଥାଉ ତୁ ପୁଣି କାଟିଲେ ଝରେ ଲହୁ
ସେ କଷ୍ଟ କଥା ପାଶୋରି ଦେଇ ଦେଖାଉ ପୁଣି ଭଉ ।
କାନ୍ଥ ବାଡରେ ଲେଖା ହୋଇଛି ଖାଇବ ଅଳ୍ପ ମାଂସ
ପନି ପରିବା ଖାଇବ ବେଶୀ ରୋଗ ନଯିବ ପାଶ ।
ତୋ ବଡ ଭାଇ ଅଟଇ ମୁହିଁ ନକାଢ଼ ଆଉ ଭଉ
ମାନବ ଦେହ ପୁଷ୍ଟି ସାଧନେ ମତି ସର୍ବଦା ଥାଉ ।

# ଚିନି ଓ ଲୁଣ

ରାତି ଅଧରେ ଗେଷେଇ ଘରେ
ଲାଗିଲା ଘୋର କଳି
ଚିନି ଓ ମିଶି ଲୁଣକୁ ଡାକି
ଦେଉଥିଲେ ସେ ଗାଳି ।

ହଇଲେ ଲୁଣ କେଡେ ସାହାସ
ରହିଛୁ ପାଖେ ମୋର
ରଙ୍ଗ ରୂପରେ ହେଲେ ବି ସମ
ନହେବୁ ଗୁଣେ ତୁଲ ।

ଗୁଣ ମୋହର ପାରିବୁ କଳି
ଦାମ୍ ବି ଅଟେ ଚଢ଼ା
ମୋହରି ଯୋଗୁଁ ମିଠାଇ କେତେ
ହୋଇଣ ଥାଏ ଗଢ଼ା ।

ଖିରିରେ ମିଶେ ସ୍ୱାଦ ପରଶେ
ଗୁଖୁଛୁ ତାର ସ୍ୱାଦ
ଗୁହାର ମଜା ମିଶିଲେ ବଢେ
ମୋର ସାଥିରେ ଦୁଧ ।

କଳରେ ମୁହିଁ ତିଆରି ହୁଏ
ସମୁଦ୍ରେ ବୁଡ଼ି ମରୁ
ଦି ତିନି ଟଙ୍କା ତୋହର କିଲେ
ବାହାରିଯା ଏ ଘରୁ ।

କାକୁତି ହୋଇ କହଇ ଲୁଣ
ତୁମେ ମୋହର ଅପା
ଅଯଥାଟାରେ ମୋର ଉପରେ
କିମ୍ପାଇ ହୁଅ ଖପା ।

ଧନୀ ଦରିଦ୍ର ରଜା ପରଜା
ସଭିଙ୍କର ମୁଁ ଲୋଡ଼ା
ସମସ୍ତେ ମୋତେ ପାରନ୍ତି କିଣି
ନୁହଁଇ ଦାମ ଚଡ଼ା ।

ଯେତେ ମିଶିଲେ ସବୁ ଦରବେ
ନ ମିଶେ ଯେବେ ମୁହିଁ
ପାଣିଚିଆ ସେ ଦରବ ଲଗେ
ଜାଣିକି ନାହୁଁ ତୁହି ।

ତୋତେ ଖାଇଲେ ଡାଇବେଟିସ
ଦାନ୍ତ ଖାଏ ଯେ ପୋକ
ଶରୀର ହିତେ ହୁଏ ମୁଁ ଲୋଡ଼ା
ଆଦରେ ମୋତେ ଲୋକ ।

ଗରୀବ ଲୋକ ପଖାଳେ ମୋତେ
ଖାଏ ମିଶାଇ କରି
କେବଳ ଧନୀ ପଇସା ବାଲା
ତୋତେ ଥାଆନ୍ତି ବରି ।

ତରକାରୀରେ ହୁଏ ମୁଁ ଲୋଡ଼ା
ତୋତେ ଲୋଡ଼ନ୍ତି ନାହିଁ
ତଥାପି ତୋତେ ସମ୍ମାନ କରେ
ତୁହି ମୋ ବଡ଼ ଦେଇ ।

ପାଣିରେ ଆମେ ଦିଜଣ ମିଶି
କରିବା ଯେଉଁ ଘୋଳ
ପିଇ ତାହାକୁ ସୁସ୍ଥ ହୋଇବେ
କମିବ ଝାଡ଼ା ନାଳ ।

ମାନବ ହିତେ ଅମରି ଲୋଡ଼ା
ଆସ ବସିବା ମିତ
ଝଗଡ଼ା ଭାବ ମନରୁ ତେଜି
ଗାଇବା ଖୁସି ଗୀତ ।



# ଜହ୍ନ ଓ ତାରା

ଆକାଶର କୋଳେ ତାରକାର ମେଳେ
ଖେଳୁଥିଲୁ ଦିନେ ଜହ୍ନ
କେଡ଼େ ତୋର ତାର ଜୋଛନା ଅଟଇ
ଦେଖି ଉଲୁସିଲା ମନ
ମନରେ ଆସିଲା ଗର୍ବ
ତୁମ ସହ ଆଉ ଖେଳିବିନି ତାର
ପ୍ରକାଶିଲ ମନ ଭାବ ।। ୧ ।।
ମୋର ରୂପ ଦେଖି ଫୁଟଇ କୁମୁଦ
ଜହ୍ନି ଫୁଲ ଥାଏ ହସି
ବାଳକ ବାଳିକା ମୋର ଆଲୁଅରେ
ଖେଳିଥାନ୍ତି ହୋଇ ଖୁସି
କୁଆଁର ପୁନେଇ ଦିନ
କେତେ ରଙ୍ଗେ ବାଳା ଗୀତ ଗାଇଥାନ୍ତି
ପୁଚି ଖେଳେ ଥାଏ ମନ ।। ୨ ।।
କୁନି ପୁଅ ଝିଅ ହେବେ ଅଝଟିଆ
ମାଆ କୋଳେ ତାଙ୍କୁ ଧରି
ଡାକିଥାଏ ମୋତେ ନାନା ବାୟା ଗୀତେ
ଅମୃତ ପଡଇ ଝରି
ଆ ଜହ୍ନ ଶରଦ ଶଶୀ
କୁନା କୋଳେ ପଡ ଖେଳିବ ତୋ ତଳେ
କୁନା ଖାଏ ହସି ହସି ।। ୩ ।।

ଅଭିମାନ କରି ଫେରିଗଲେ ସର୍ବେ
ରହିଲେ ଲୁଚି ଗଗନେ
ପୂର୍ଣ୍ଣମୀର ପରେ ଚନ୍ଦ୍ର କ୍ଷୟ ଦେଖି
ଭାବିଲେ ତାରକା ମାନେ
ସୁଖ ପରେ ଆସେ ଦୁଃଖ
ସୁଖ ସମୟରେ ବଡେଇ ଯେ କରେ
ତାହାଠାରୁ ନାହିଁ ମୂର୍ଖ ॥ ୪ ॥
ଡାକିଲେ ତାରକା ହେ ସରଗ ଶଶୀ
ଅପଦେ କରିଲ ଗର୍ବ
ବିପଦ ତୁମର ଘନେଇ ଆସୁଛି
ମନରେ ଏକଥା ଭାବ
ପୂର୍ଣ୍ଣମୀ ପଛରେ ଅମା
ରହିଥିବୁ ଆମେ ଏ ନୀଳ ଆକାଶେ
ନ ଦିଶିବ ତୁମେ ଯମା ॥ ୫ ॥
ଆମ ଯୋଗୁଁ ତୁମେ ଦିଶୁଛ ସୁନ୍ଦର
କବି ତା' କବିତା ଲେଖେ
ତାରକାର ମାଳା ପିନ୍ଧିଅଛି ନଭ
ଝଲକେ ଚନ୍ଦ୍ର ପଦକେ
ସଙ୍ଗାତ ବସିବା ଆସ
ସେହି ଦିନୁ ଚନ୍ଦ୍ର ତାର ସାଥି ହୋଇ
ଶୋଭିଲେ ନୀଳ ଆକାଶ ॥ ୬ ॥

# କଲମ ଓ କାଗଜ



ଦିନେ ଘଡିରେ ମୋ ପଢ଼ା ଘରେ
ହୋଇଲା ଘୋର କଳି
କଲମଟାକୁ କାଗଜ ସବୁ
ଦେଉଥିଲେ ସେ ଗାଳି ।

ଆରେ କଲମ ନାହିଁ ସରମ
ପିଉଛୁ ରଙ୍ଗ ପାଣି
ନାଲି ବି କେବେ କଳାବି କେବେ
ପାରୁଛୁ କି ତୁ ଜାଣି ।

ସୁନ୍ଦର ଧଳା ଦେହକୁ ମୋର
କରୁଛୁ କିଆଁ ମଳି
ଲେଖୁଛୁ କେତେ ମୋହରି ଦେହେ
ଅକ୍ଷର ଭଳି ଭଳି ।

ଚଅର ଚର ଗଲୁ ମୋ ଦେହେ
ଦେଉଚୁ କଷ୍ଟ ମହା
କେବେ ତୋହର ତୁଣ୍ଡରୁ ମୁହିଁ
ଶୁଣିଲି ନାହିଁ ଆହା ।

କଲମ କହେ ନଦେ ସରମ
ତୁ ଅଟୁ ମୋର ଅପା
ତୁହାରେ କିମ୍ବା ମୋର ଉପରେ
ହେଉଛୁ ଆଜି ଖପା ।

ମୋହରି ପାଇଁ ତୋର ଆଦର
ତୋହରି ପାଇଁ ମୁହିଁ
ମିଳି ମିଶିକି ଚଳିବା ଆମେ
ହୋଇ ଭଉଣୀ ଭଇ ।

ଆମରି ଯୋଗୁଁ ମଣିଷ ପିଲ
ଜଗତେ ହେବେ ଦୃଢ
ମଣିଷ ହିତେ ଜନମ ଆମ
ନୁହେଁ କେ ଛୋଟ ବଡ ।

❊ ସମାପ୍ତ ❊



ଲେଖକ ଶ୍ରୀ ବ୍ରଜ ବିହାରୀ ଦାଶ

ଗ୍ରାମ ଅରଙ୍ଗାବାଦ

ପୋ. ବରୀ, କଟକ

ଜିଲ୍ଲା : ଯାଜପୁର


---


ପ୍ରକାଶକ **ଇସ୍ପାତ ସାହିତ୍ୟ ସଂସଦ**

ରାଉରକେଲା

ମୂଲ୍ୟ ୧୦. ୦୦ (ଦଶ ଟଙ୍କା) ମାତ୍ର


---

[ ଲେଖକ ଶ୍ରୀ ବ୍ରଜବିହାରୀ ଦାଶଙ୍କ ଜନ୍ମ ଯାଜପୁର ଜିଲ୍ଲାର ଅରଙ୍ଗାବାଦ ଗ୍ରାମରେ ଅଧିକାରୀ ଜଗନ୍ନାଥ ଦାଶ ଓ ମାତା ସରସ୍ୱତୀ ଦେବୀଙ୍କର ସେ କନିଷ୍ଠ ପୁତ୍ର ଏବଂ ଜନ୍ମ-୧୯୫୮ ମସିହା ନଭେମ୍ବର ମାସ ୬ ତାରିଖ । ସମ୍ପ୍ରତି ସେ ରାଉରକେଲା ଇସ୍ପାତ କାରଖାନାର ସି. ପି. ପି.-୨ର ସିନିୟର ଅପରେଟର-କମ୍-ଟେକ୍ନିସିଆନ ଭାବେ କର୍ମରତ । ]